ISSN: 2456-9194, Vol. I, Issue. I, 2017

ପ୍ରତ୍ୟୟ

(Journal of Odia Language, Culture and Science)

# ଓଡ଼ିଆ କବିତାରେ ପ୍ରଗତିବାଦର ଧରା ଓ ଧାରା

ଡକ୍ଟର ବିଭୂତି ଭୂଷଣ ପ୍ରଧାନ

ଅଧ୍ୟାପକ ,ଆଳି ମହାବିଦ୍ୟାଳୟ, ଆଳି

bibhuti_pradhan1@yahoo.co.in

***ସଂକ୍ଷିପ୍ତ ପରିଚୟ-****ସାହିତ୍ୟରୂପୀ ନଈଟିଏ ଅନବରତ ଧାରାରେ ବହି ଚାଲୁଥିବାବେଳେ ଏକ ମୋଡ଼ ବା ବାଙ୍କି ନିକଟରେ ପହଞ୍ଚିଲା ଯେଉଁଠି ସାହିତ୍ୟ ମନର ବିଳାସ ହୋଇ ରହିଲା ନାହିଁ । ଏହା ସତେଯେପରି ଚିନ୍ତା ରାଜ୍ୟରେ ବିପ୍ଳବୀମାନଙ୍କର ମହାନ ଅସ୍ତ୍ରରୂପେ ପରିଗୃହୀତ ହେଲା, ଯାହାର ନାମ ପ୍ରଗତିବାଦୀ ଯୁଗ । ସମାଜରୁ ଅନ୍ୟାୟ, ଅତ୍ୟାଚାର ଓ ଶୋଷଣର ମୂଳୋପô।ଟନ କରି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକ ଶୋଷଣମୁକ୍ତ ଶ୍ରେଣୀହୀନ ସମାଜର ପରିକଳ୍ପନା ହିଁଏହି ଯୁଗ ସାହିତ୍ୟର ମୁଖ୍ୟ ଆଭିମୁଖ୍ୟ । ବିଶେଷକରି ଆଭିଜାତ୍ୟପୂର୍ଣ୍ଣ ସାମନ୍ତବାଦୀ ମନୋଭାବକୁ ସଂପୂର୍ଣ୍ଣରୂପେ ପରିହାର କରି ସାଧାରଣ ଜନତାର କରୁଣଚିତ୍ରକୁ ସାହିତ୍ୟରେ ଉପସ୍ଥାପନା କରିବା ସହ ନିଜର ଅସ୍ତିତ୍ୱ ସଂପର୍କରେ ଜନସଚେତନତା ସୃଷ୍ଟି କରିବା ହିଁପ୍ରଗତିବାଦୀ ସାହିତ୍ୟର ଧରା ଓ ଧାରା ଏହା ନିଃସନ୍ଦେହ ।*

***ପ୍ରମୁଖଶବ୍ଦାବଳୀ-(Keywords)-*** *ମାନବିକ ଆଦର୍ଶ, ହୃଦୟର ଅନାବିଳ ଭକ୍ତିଭାବ, ମାନବୀୟ ଅନ୍ତଃସତ୍ତା, ମାନବୀୟ ଜୀବନର ସୌନ୍ଦର୍ଯ୍ୟ*

## I. ଉପକ୍ରମ:

ସାମାଜିକ ଜୀବନର ଅନ୍ତିମ ପରିଣତି ସାହିତ୍ୟରେ ରୂପାୟିତ ହୋଇଥାଏ। ସମୟର ପ୍ରବାହରେ ସାହିତ୍ୟରେ ସାମାଜିକ ସ୍ପନ୍ଦନର ଗତି ଯେତେ ତୀବ୍ର ହୁଏ । ସାହିତ୍ୟ ହୁଏ ସେତିକି ପ୍ରତିଶ୍ରୁତି ଓ ପ୍ରତିକ୍ରିୟାଶୀଳ । ବିଶ୍ୱର ପ୍ରତ୍ୟେକ ବଡ଼ ବଡ଼ ସାହିତ୍ୟିକ ସୃଷ୍ଟି ମଧ୍ୟରେ ସମୟ ଓ ସାମାଜିକତାର ସୁଗନ୍ଧିତ ଅତର ଆତ୍ମଗୋପନ କରି ସମାଜରେ ଆକର୍ଷଣୀୟ ଓ ପ୍ରଭାବଶାଳୀ ବିପ୍ଳବ ସୃଷ୍ଟି କରିବାକୁ ସକ୍ଷମ ହୋଇଥାଏ । ପ୍ରତ୍ୟେକ ସାହିତ୍ୟର ଗତିଧାରା ପରି ଓଡ଼ିଆ ସାରସ୍ୱତ ଚେତନାର ମାର୍ଗରେ ନବ ନବ ଅନ୍ୱେଷାର ସ୍ୱର ସୁସ୍ପଷ୍ଟ । ସେହି କ୍ରମିକ ପ୍ରବାହର ଭିନ୍ନ ଏକ ଆବେଗର ନାମ ହେଉଛି ପ୍ରଗତିବାଦୀ ଚେତନା।

ପ୍ରଗତିବାଦ ହେଲା ଯଥାର୍ଥବାଦର ପରିପୋଷକ । ଏଥିରେ ଆଦର୍ଶ ଅପେକ୍ଷା ବାସ୍ତବ ଜୀବନର ଘନଘଟା ଅଧିକ ରୂପାୟିତ ହୋଇଥାଏ । ମାର୍କ୍ସଙ୍କ ସାମ୍ୟବାଦୀ ଆଦର୍ଶ ଏବଂ ଲେନିନଙ୍କ ସାମ୍ୟବାଦୀ ଆନ୍ଦୋଳନ ଦ୍ୱାରା ଏହି ଯୁଗର ସାହିତ୍ୟ ପ୍ରତିପାଳିତ । ଏ ଯୁଗର ଲେଖକ ଚାଷୀ ମୂଲିଆଙ୍କ ଅଧିକାର ପାଇଁ ବ୍ୟାକୁଳ । ତା'ରି ଶ୍ରମର ମୂଲ୍ୟ ଉପରେ ସାମାଜିକ ମୂଲ୍ୟବୋଧ ସ୍ୱୀକାର କରିବାକୁ ପ୍ରସ୍ତୁତ ।(୧) ଭାରତୀୟ କାବ୍ୟିକ ପରଂପରାରେ ଏହି ସମାଜବାଦୀ ବାସ୍ତବବାଦ ଚେତନା ସମ୍ବଳିତ ସ୍ୱର୍ଗକୁ 'ପ୍ରଗତିବାଦୀ ଚେତନା' ରୂପେ ଅଭିହିତ କରାଯାଇଛି । ସୃଷ୍ଟି ଗତିଶୀଳ ଏହା ମାର୍କ୍ସବାଦର ତର୍କ । ମାର୍କ୍ସଙ୍କ ଐତିହାସିକ ଦ୍ୱନ୍ଦ୍ୱବାଦ ଜୀବନ, ସମାଜ ଓ ଯୁଗଚେତନାର ଗତିଶୀଳତା ଉପରେ ଗୁରୁତ୍ୱ ଆରୋପ କରେ । ଧର୍ମ, ସଂସ୍କୃତି ତଥା ପୁରାତନ କୁସଂସ୍କାରକୁ ପରିତ୍ୟାଗ କରି ଜୀବନର ସର୍ବାଙ୍ଗୀନ ଉନ୍ନତି ପ୍ରତି ଦୃଷ୍ଟି ଦିଆଯାଇଥିବାରୁ, ସମାଜବାଦୀ କବିତାକୁ ଭାରତୀୟ ପରଂପରାର ପ୍ରଗତିବାଦୀ କବିତା ରୂପେ ମଧ୍ୟ ଏହି ସମୟରେ ଏ ଦେଶର ସାହିତ୍ୟିକଗଣ କେବଳ ଓଡ଼ିଶା ଅଥବା ଗାନ୍ଧିଜୀଙ୍କ ଆନ୍ଦୋଳନ ମଧ୍ୟରେ ଆବଦ୍ଧ ନ ରହି, ଆନ୍ତର୍ଜାତିକ ରାଜନୀତିକ ଚିନ୍ତାଧାରା ପ୍ରତି ଉନ୍ମୁଖ ହୋଇପଡ଼ିଛନ୍ତି ଏବଂ ଏହା ଫଳରେ ସାମ୍ୟବାଦୀ ଚିନ୍ତାଧାରାର ଆହରଣ ଓ ଏ ଦେଶ ମାଟିରେ ତାହାର ଯଥାଯଥ ସଂସ୍ଥାନର ଏକ ନୂତନ ପର୍ବ ଏ ଜାତିର

ସାହିତ୍ୟକୁ ଏହି ସମୟରୁ ସଂପୂର୍ଣ୍ଣ ରୂପେ ଆଚ୍ଛାଦିତ କରିଛି । ପୂର୍ବବର୍ତ୍ତୀ ସବୁଜଗୋଷ୍ଠୀର ସ୍ୱପ୍ନର ମୀନାର ଭାଙ୍ଗି ଯାଇଛି । ସ୍ୱପ୍ନବିଳାସୀ କବି କାଳିନ୍ଦୀଚରଣ ଓ ବୈକୁଣ୍ଠନାଥ ସେମାନଙ୍କର ପୂର୍ବ ଆଚରିତ ସ୍ୱପ୍ନଚାରୀ କଳ୍ପନାର ଇନ୍ଦ୍ରରଥ ପରିହାର କରି, ପଳାୟନ ପନ୍ଥା ପରିହାର କରି ଅତୀନ୍ଦ୍ରିତ ରହସ୍ୟବାଦର ମାୟାଜାଲ ଛିଡ଼ାଇ ଦେଇ ଏହି କାଳରୁ ହିଁପ୍ରଗତିବାଦକୁ ଆଶ୍ରୟ କରିଛନ୍ତି । ଭାରତର ଅନ୍ୟାନ୍ୟ ଅନେକ ପ୍ରାଦେଶିକ ସାହିତ୍ୟରେ ମଧ୍ୟ ଏହି ପରିବର୍ତ୍ତନର ସ୍ରୋତ ପ୍ରବାହିତ ହୋଇଛି । ଡାରଉଇନଙ୍କ ବିବର୍ତ୍ତନବାଦ, ନିତ୍‌ସେଙ୍କ ଈଶ୍ୱରହୀନତାର ମନ୍ତ୍ର, ଫ୍ରୟଡଙ୍କ ମନୋବିଶ୍ଳେଷଣ ମଧ୍ୟ ଏହି ଅଭିନବ ଚେତନାକୁ ଅଧିକ ଋଦ୍ଧିମନ୍ତ କରିଛି । ସୋଭିଏତ୍‌ଋଷର ସାମ୍ୟବାଦୀ ଆନ୍ଦୋଳନ ଏବଂ ବଲଶେଭିକ୍ ପାଟିର ବିଜୟ, ବିଶ୍ୱର ପ୍ରତ୍ୟେକ ଦେଶ ଏହି ବୈପ୍ଳବିକ ଦର୍ଶନର ବିଜୟରେ ପ୍ରଭାବିତ ହୋଇ ୧୦.୦୪.୧୯୩୦ ମସିହାରେ ଲକ୍ଷ୍ନୌଠାରେ ସର୍ବଭାରତୀୟ ସ୍ତରରେ ଅନୁଷ୍ଠିତ ହୋଇଛି 'ନିଖିଳ ଭାରତ ଲେଖକ ସଂଘ'। ଏହା ପୂର୍ବରୁ ଅନୁଷ୍ଠିତ ପ୍ୟାରିସ୍‌ ବିଶ୍ୱଶାନ୍ତି କଂଗ୍ରେସର ପ୍ରଭାବ ମଧ୍ୟ ଏଥିରେ ହୋଇଛି ପ୍ରତିଫଳିତ । ଏହି ସାରସ୍ୱତ ସମ୍ମିଳନୀରେ ମୁଖ୍ୟତଃ ୟୁରୋପ ଓ ଏସିଆର ବିଶିଷ୍ଟ ସାହିତ୍ୟିକମାନେ ଏକତ୍ରିତ ହୋଇଥିଲେ । ଆବାହକ ଥିଲେ ମାକ୍ସିମ୍ ଗର୍କି ଏବଂ ୟୁରୋପରୁ ରୋମାଁରୋଲା ଓ ବାରାବୁସ୍ । ଅନ୍ୟମାନଙ୍କ ମଧ୍ୟରେ ଥିଲେ ଆନ୍ଦ୍ରେଜିଡ୍, ଇ.ଏମ୍. ଫୋଷ୍ଟର, ଆଣ୍ଡ୍ରେମୁଲର, ଆଲଡସ୍ହକ୍ସଲେ, ମାଇକେଲ୍ ଗୋଲ୍ଡ, ଜନ୍ ଷ୍ଟ୍ରାଚି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ମର୍ମରେ ଏକ ସାଂସ୍କୃତିକ ସମ୍ମିଳନୀ କରି ନୂତନ ସାହିତ୍ୟ ସୃଷ୍ଟି ନିମନ୍ତେ ବାତାବରଣ ସୃଷ୍ଟି କରିବାର ଉଦ୍ୟମ ସ୍ୱର୍ଗତଃ ଭଗବତୀ ଚରଣଙ୍କ ସାମାଜିକ ନେତୃତ୍ୱ ଓ ଦୂରଦୃଷ୍ଟିର ପରିଚୟ ଦିଏ । କେବଳ ବକ୍ତୃତା ବା ସଭାସମିତି ମାଧ୍ୟମରେ ଏହି ନବୀନ ଭାବଧାରାକୁ ଯଥାର୍ଥ ଭାବରେ ସମାଜରେ ପ୍ରତିଷ୍ଠିତ କରିହେବ ନାହିଁଏବଂ ସେଥିପାଇଁ ଉପଯୁକ୍ତ ଗଣମାଧ୍ୟମ ଯେ ନିତାନ୍ତ ଆବଶ୍ୟକ । ଏହି ଚିନ୍ତାରେ ସେ ୧୯୩୫ ମସିହା ନଭେମ୍ବର ୨୯ ତାରିଖରୁ ଡିସେମ୍ବର ୪ ତାରିଖ ପର୍ଯ୍ୟନ୍ତ କଟକର ଶ୍ରୀରାମଚନ୍ଦ୍ର ଭବନରେ ଏକ ଆଲୋଚନା ଚକ୍ରର ଆୟୋଜନ କରିଥିଲେ । ଏହି ସମ୍ମିଳନୀରେ ସଭାପତି ଥିଲେ କାଳିନ୍ଦୀଚରଣ । ଭଗବତୀ ଚରଣଙ୍କ 'ଅର୍ଥ ଓ ପରମାର୍ଥ', ରାମପ୍ରସାଦ ସିଂଙ୍କ 'ବର୍ତ୍ତମାନ ସାହିତ୍ୟରେ ନୂତନ ଭାବଧାରାର ଆବାହନ', ଗୁରୁଚରଣ ପଟ୍ଟନାୟକଙ୍କ 'ସମସାମୟିକ ଇତିହାସର ଗତିଧାରା' ପ୍ରଭୃତି ପ୍ରବନ୍ଧ ପଠିତ ଓ ଆଲୋଚିତ ହୋଇଥିଲା । ଏହି ସମ୍ମିଳନୀର ଆଦ୍ୟ ଉତ୍ସବରେ କବି ଅନନ୍ତ ପଟ୍ଟନାୟକଙ୍କର 'ଉଦ୍‌ବୋଧନ' ସଂଗୀତ ସଂସଦର ଆଭିମୁଖ୍ୟକୁ କିପରି ରୂପାୟିତ କରିଥିଲା, ତାହା ଏଠାରେ ପ୍ରଣିଧାନଯୋଗ୍ୟ। କବିଙ୍କ ଭାଷାରେ –

"ନବୀନ ଯୁଗର ତରୁଣ ଜାଗରେ
ଜାଗ ବନ୍ଧନ - ହରା
ବକ୍ଷ ଶୋଣିତ ଲକ୍ଷ୍ୟ ଜୀବନେ
ଖେଳାଅ ଆଲୋକ ଧାରା ।
ଛିନ୍ନ କରରେ ବନ୍ଧନ ରାଜି
କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି
ଖଣ୍ଡିତ ଶତଦେଶ ।
ମହାମାନବର ଶଂଖ ଶବଦେ
ଶମୁରେ ଦୁଃଖ ଜ୍ୱାଳା
ଜାଗବନ୍ଧନ କାରା । ୧ ।
ମରଣ ଦୁଆରେ ଚରଣ ଅରପି
ଗାଅରେ ଅମର ଗାନ
ପୋଛିଦିଅ ଆଜି ମାନବ ଶିରସୁଁ
ସଂଚିତ ଅପମାନ
ଲଂଘି ବନାନୀ ଶୈଳ ସାଗର
ଚୂରରେ ତିମିର କାରା ।"

'ଆଧୁନିକ' ପତ୍ରିକା ପ୍ରକାଶିତ ହେବାପରେ 'ଉତ୍କଳ ସାହିତ୍ୟ', 'ସହକାର', 'ନବଭାରତ' ପ୍ରଭୃତି ପତ୍ରିକାରେ ପୂର୍ବାନୁଲୋଚିତ ୟୁରୋପୀୟ ଚିନ୍ତାଧାରା ଦେଇ ଆସିଥିବା ଏଇ ନବୀନ ଭାବଧାରାର ରୁଚିଗତ ସାହିତ୍ୟିକ ଚିତ୍ର କ୍ରମେ ବ୍ୟାପକତର ହୋଇଛି । କିନ୍ତୁ ସ୍ମରଣ କରାଯାଇପାରେ ଯେ ଏହି ବିଧିବଦ୍ଧ ପ୍ରୟାସ ପୂର୍ବରୁ ୧୯୨୦ ମସିହାରେ 'ଉତ୍କଳ ସାହିତ୍ୟ' ପତ୍ରିକାର ସ୍ୱନାମଧନ୍ୟ ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ସଂପାଦକୀୟରେ ଲେନିନ୍ ଓ କାର୍ଲମାର୍କସଙ୍କ ନାମ ନେଇ ସାମ୍ୟବାଦୀ ଆଦର୍ଶର ବ୍ୟାଖ୍ୟା କରିଛନ୍ତି ।(୨) ୧୯୧୮ ମସିହାରେ ରଚିତ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ 'ଭିକାରୀ' କବିତାରେ ମଧ୍ୟ ଭିକାରୀଟିଏ ପାଇଁ ସଂବେଦନଶୀଳତା ପ୍ରକାଶିତ ହୋଇଛି । ତାହା ମଧ୍ୟରେ ସାମ୍ୟବାଦୀ ଦର୍ଶନକୁ ମଧ୍ୟ ଅନୁଶୀଳନ କରାଯାଇପାରେ ।(୩) ସେହିପରି କାଳିନ୍ଦୀଚରଣଙ୍କ 'ମୁକ୍ତାଗଡ଼ର କ୍ଷୁଧା', 'ଅମରଚିତା' ଉପନ୍ୟାସ ଦ୍ୱୟ ୧୯୩୩ ସାଲରେ ଯୁଗବୀଣାରେ ପ୍ରକାଶିତ ସଚ୍ଚିଦାନନ୍ଦଙ୍କ 'ଭିକାରୀ' ଗଳ୍ପ ସହ ଗର୍କିଙ୍କ 'Mother'ଉପନ୍ୟାସର ଅନୁବାଦ ମଧ୍ୟ ଏ କ୍ଷେତ୍ରରେ ବେଶ୍ ସ୍ମରଣୀୟ ମନେହୁଏ ।(୪)

ମୁଖ୍ୟତଃ କବିତା କ୍ଷେତ୍ରରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ ଓ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କଠାରୁ ଏହି ମାନବବାଦୀ ବୈପ୍ଳବିକ ଧାରା ୧୯୩୦-୪୦ ମଧ୍ୟରେ ଆରମ୍ଭ ହୋଇ ୧୯୫୦ ମଧ୍ୟରେ ରଘୁନାଥ ଦାସ, ମନମୋହନ ମିଶ୍ର, କୁଞ୍ଜବିହାରୀ ଦାଶ, ରଜନୀକାନ୍ତ ଦାସ, କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ଚକ୍ରଧର ରାଉତ, ଜୀବନାନନ୍ଦ ଆଚାର୍ଯ୍ୟ, ବୈକୁଣ୍ଠନାଥ ଦାସ, ସୁନନ୍ଦ କର, ରବୀନ୍ଦ୍ର ନାଥ ସିଂ, ବ୍ରଜନାଥ ପ୍ରମୁଖ ବହୁ ମୁଖ୍ୟ ଓ ଗୌଣ କବିଙ୍କ ଚେତନାରେ କ୍ରମଶଃ ଉଦ୍ଭାସିତ ହୋଇଛି । ସଚ୍ଚିଦାନନ୍ଦଙ୍କ କବିତା ସଂକଳନ 'ଅଭିଯାନ' (୧୯୩୮), 'ବାଜିରାଉତ' (୧୯୪୩), କାଳିନ୍ଦୀଚରଣଙ୍କ କବିତା 'ଜୀବନସ୍ପର୍ଶ' (୧୯୩୫), 'ଜୟ ଭଗବାନ', 'ଯାଦୁଘର', 'ଛୁରୀଟିଏ

ଲୋଡ଼ା', 'ଆଗାମୀ' ପ୍ରଭୃତି ତଥା ଅନନ୍ତ ପଟ୍ଟନାୟକଙ୍କ ରଚିତ 'ଶାନ୍ତିଶିଖା', 'ରକ୍ତଶିଖା', 'ତର୍ପଣ କରେଆଜି'; ମନମୋହନ ମିଶ୍ରଙ୍କ 'କୋଟିକଣ୍ଠେ', 'ଆବାଜ', 'ଜନତାର ଜୟଗାନ'; କୁଞ୍ଜବିହାରୀ ଦାଶଙ୍କ 'ପାଷାଣ ଚରଣେ ରକ୍ତ', 'ମାଟି ଓ ଲାଠି'; ରବୀନ୍ଦ୍ରନାଥ ସିଂଙ୍କ 'ଚରମପତ୍ର', ପଥପ୍ରାନ୍ତର କବିତା', 'ଶିଥିଳ ବଲ୍‌ଗା', 'ଜ୍ୱାଳାର ମାଳା', 'ଲାଲ ପଖୋଡ଼ାର ପ୍ରେତ', 'ଝଡ଼ର ଗାନ୍ଧାର'; ରଘୁନାଥ ଦାସଙ୍କ 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା', 'ପୁନଶ୍ଚ କବିତା'; ଲକ୍ଷ୍ମୀଧର ନାୟକଙ୍କ 'ପ୍ରଳୟ ପଥେ', 'ପ୍ରଭାତର ଯାତ୍ରୀ', 'ବିତର ବାଆ' ଆଦି କବିତା ସଂକଳନଗୁଡ଼ିକରେ ଏହି ଭାବଧାରାର ଅସାଧାରଣ ଉନ୍ମୁଖତା ଲକ୍ଷ୍ୟ କରାଯାଏ ।

ଗତିବାଦ ସାମାଜିକ ଜୀବନର ସମାନତା ପାଇଁ ଗଣଶକ୍ତି ଉପରେ ଗୁରୁତ୍ୱ ଆରୋପ କରିଥାଏ । ସଚ୍ଚି ରାଉତରାୟଙ୍କ 'ବନ୍ଦୀର ବନ୍ଦନା', 'ନବବାତକ'; ବୈକୁଣ୍ଠ ନାଥଙ୍କ 'ଖେଳାଉଛୁ କାଳିଆ ନାଗ'; ରାଧାମୋହନଙ୍କ 'କବି ହେବାପାଇଁ ବାସନା ମୋର'; ମନୋଜ ଦାସଙ୍କ 'ଅଗ୍ରପଥିକ'; ରଘୁନାଥ ଦାସଙ୍କ 'ପଦଧ୍ୱନି'; ସଂଘାଇ ଓ ମନମୋହନଙ୍କ 'ଜନତାସାକ୍ଷୀ' ଆଦି କବିତାରେ ଗଣଜୀବନର ଦୁଃଖ ଓ ଦୈନ୍ୟର କରୁଣ ଚିତ୍ର ଉପସ୍ଥାପିତ ହେବାସହ ସାମାଜିକ ବ୍ୟବସ୍ଥା ବିରୋଧରେ ଦୃଢ଼ ସ୍ୱର ଉତ୍ତୋଳନ କରିବାକୁ ଆହ୍ୱାନ ଦିଆଯାଇଛି । ରଘୁନାଥଙ୍କ ଭାଷାରେ –

"ଭୂଗୋଳର ଭେଦ ଭୁଲି
ଦେଶେ ଦେଶେ ଆମ ଅଭିଯାନ
ରକ୍ତଖିଆ ରାକ୍ଷସ ବିରୁଦ୍ଧେ
କାହିଁଶୋଭାଯାତ୍ରା, କାହିଁଧର୍ମଘଟ, କାହିଁଅବା ଯୁଦ୍ଧ
ବିଶ୍ୱର ଜନତା ଆମେ ଆଜି ଏକ ପ୍ରାଣ
ଲକ୍ଷ କୋଟି ଲୋକ ହାତେ ଏହାହିଁନିଶାଣ
ରକ୍ତଭଜା ନେତା
ଏକହିଁଆବଜି ଉଠେ ସାରା ବିଶ୍ୱେ ଏକହିଁସଂକେତ
ମାଟିର ସନ୍ତାନ ଆମେ ସର୍ବେ ଏକ ସର୍ବହରା ଭାଇ
ଆମକୁ ପ୍ରତୀକ୍ଷା ରଖେ ଅବିମୁକ୍ତ ଅୟୁତ ସଂଘାଇ ।"

ପ୍ରଗତିବାଦର ବିଶ୍ୱାସ କରୁଥିବା ସ୍ରଷ୍ଟା ଭେଦଭାବ ଓ ବୈଷମ୍ୟର ଘୋର ବିରୋଧୀ । କ୍ରାନ୍ତିକାରୀ କବିମାନସ ସାମାଜିକ ବୈଷମ୍ୟର ଉତ୍କଟ ଚିତ୍ରର ଅଭିବ୍ୟକ୍ତି ମାଧ୍ୟମରେ ସାମାଜିକ ସାମ୍ୟର ପ୍ରତିଷ୍ଠା ପାଇଁ ଉଦ୍‌ବୋଧନ ଦିଏ । ଅନନ୍ତ ପଟ୍ଟନାୟକଙ୍କ 'ଆସିଚି ମୁଁ ଆସିଚି'; ସୁନନ୍ଦ କରଙ୍କ 'ଆଗାମୀ କାଲି'; ଦୁର୍ଗାଚରଣ ସାମନ୍ତଙ୍କ 'ଦୁଇ ଶିବିର'; କାଳିନ୍ଦୀଚରଣଙ୍କ 'କିଏ ଶଳା ସଇତାନ୍'; ଚକ୍ରଧର ରାଉତଙ୍କ 'ଜାଗଜାଗ ମଣିଷ ଦେବତା'; କୁଞ୍ଜବିହାରୀ ଦାଶଙ୍କ 'ନଣ୍ଡାର ଚିଠି'; ରବୀନ୍ଦ୍ର ନାଥ ସିଂଙ୍କ 'ସର୍ବହରା' ଆଦି କବିତା ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହି ଘୋଷଣ ଓ ଭେଦଭାବର ତୀବ୍ରତା ଦର୍ଶାଇ ପ୍ରଗତିବାଦୀ କବି ଚେତନା ସାମାଜିକ ବୈଷମ୍ୟ ବିରୋଧରେ ସଚେତନତା ସୃଷ୍ଟି କରିବାପାଇଁ ଉଦ୍ୟମ କରିଛି । ଏହାରି ମଧ୍ୟର ସାମାଜିକ ସାମ୍ୟପାଇଁ ଶୁଭ ଉଦ୍ବୋଧନର ସଂସ୍ରବ ଘଟିଛି । ବୈଷମ୍ୟ ପ୍ରପୀଡ଼ିତ ଶୃଙ୍ଖଳିତ ସୃଷ୍ଟିକୁ ସେ ସାମ୍ୟବାଦ ଭିତ୍ତିରେ ପୁନର୍ଗଠନ କରିବାକୁ ଚାହେଁ । ସେଥିପାଇଁ ପାରଂପରିକ ସମାଜ ବ୍ୟବସ୍ଥାକୁ ପରିବର୍ତ୍ତିତ କରି ନୂତନ ସାମାଜିକ ବ୍ୟବସ୍ଥା ଗଠନ କରିବାକୁ ଆହ୍ୱାନ ଦିଏ । ସାମ୍ୟବାଦୀ ସମାଜର ଭିତ୍ତିପ୍ରସ୍ତର ସ୍ଥାପନା ପାଇଁ ତଥାକଥିତ ଆଭିଜାତ ଶ୍ରେଣୀର ବିଲୋପ ସାଧନ ତା'ର ଲକ୍ଷ୍ୟ । ସଚ୍ଚି ରାଉତରାୟଙ୍କ ଭାଷାରେ –

"ଶତାବ୍ଦୀର ସିଂହଦ୍ୱାରୁ ଆସିଅଛି ଦୂତ
ଆଣିଅଛି ବାର୍ତ୍ତା ଭବିଷ୍ୟର
ଜୀବନର ସମ୍ଭାବନା ଯହିଁମୂର୍ତ୍ତିମାନ
ନାହିଁଯହିଁପ୍ରାଚୀର ପ୍ରାନ୍ତର ।"(୫)

ପ୍ରଗତିବାଦୀ କବିପାଇଁ କାବ୍ୟସାଧନା ଏକ ସ୍ୱପ୍ନବିଳାସ ନୁହେଁ । ତାହା ବିପ୍ଳବ ବିକ୍ଷୁବ୍ଧ ଜୀବନର ଫେନିଳ ଉର୍ମି । ଏଠି ନିଷ୍ପେଷିତ ଓ ପୀଡ଼ିତ ପ୍ରାଣ ଆଶକ୍ତ ନୁହେଁ, ତାହା ଅନନ୍ତ ଶକ୍ତିର ଉତ୍ସ । ସେହି ପୀଡ଼ିତ ପ୍ରାଣରେ ସଂଚିତ ଅନନ୍ତ ଶକ୍ତିର ଜୟଗାନ କରିବାପାଇଁ କବି ଆହ୍ୱାନ ଦିଏ । ସେଥିପାଇଁ ପ୍ରତିକ୍ରିୟାଶୀଳ ଦକ୍ଷିଣ ପନ୍ଥା ତ୍ୟାଗ କରି ପ୍ରଗତିଶୀଳ ବାମପନ୍ଥୀ ଚେତନାକୁ ଯାତ୍ରା କରିବା ପାଇଁ ଉଭୟ ଅସି ଓ ମସିର ବିପ୍ଳବକୁ ସମର୍ଥନ କରେ । ଶ୍ରୀଯୁକ୍ତ ରାଉତରାୟଙ୍କ ଭାଷାରେ –

"ନୂଆ ଯୁଗ ଖସଡ଼ା
ରଚେ ଆମ ବଳ୍ଲମ
ନୂଆ ଯୁଗ ଚେହେରା
ରଚେ ଆମ ବଳ୍ଲମ
ଚାଲ ଦକ୍ଷିଣକୁ ବାମେ, ବାମେ, ବାମେ... ।"(୬)

ଅନ୍ୟତ୍ର ପ୍ରଗତିବାଦୀ କବିତାରେ ପୌରୋହିତ୍ୟବାଦୀ କର୍ମକାଣ୍ଡ ସର୍ବସ୍ୱ ଧାର୍ମିକ ଅନୁଷ୍ଠାନ ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଥାଏ । ମାର୍କସ୍ ଓ ଲେନିନ୍ ଏହି ମତବାଦର ଅଗ୍ରଦୂତ । ଜନସାଧାରଣଙ୍କୁ ଧାର୍ମିକ ଅଲିଫେନା ନିଶାରୁ ମୁକ୍ତ ହେବାପାଇଁ ସେମାନେ ଆହ୍ୱାନ ଦେଇଥିଲେ । ଧର୍ମଭୀରୁ ଜନତାକୁ ପୁଞ୍ଜିପତି ଈଶ୍ୱର ବିଶ୍ୱାସର ଅଫିମ ଖୁଆଇ ତା'ର ସର୍ବସ୍ୱ ଲୁଣ୍ଠନ କରେ । ଶ୍ରୀଯୁକ୍ତ ରାଉତରାୟଙ୍କ ଭାଷାରେ –

"ଧର୍ମର ମଦ ଖୁଆଇ କରିଛ ଭାଇ
ମଣିଷ ଜାତିକୁ ଚିରଦିନ ମସଗୁଲ
ଅଫିମ ନିଶାରେ ଖୋଲି ସେ ନ ପାରେ ଆଖି

ତମେ ଶୋଷ ତା'ର ବୁକୁର ଜୀବନ ଫୁଲ ।"(୭)

ସେହିପରି କାଳିନ୍ଦୀଚରଣଙ୍କ 'ଯାଦୁଘର'; ଜ୍ଞାନୀନ୍ଦ୍ର ବର୍ମାଙ୍କ 'ମୂର୍ତ୍ତି ଓ ମନ୍ଦିର'; ରବୀନ୍ଦ୍ର ନାଥ ସିଂଙ୍କ 'ଚରମପତ୍ର'; ଜାନକୀ ବଲ୍ଲଭ ମହାନ୍ତିଙ୍କ 'ହେ ମୂକ ଦେବତା'; କୁଞ୍ଜବିହାରୀ ଦାଶଙ୍କ 'ଲୋମଶ ନୀଳହାତ'; ମାୟାଧର ମାନସିଂହଙ୍କ 'ବିନ୍ଦୁ ଓ ସିନ୍ଧୁ', 'ନମସ୍କାର' ଆଦି କବିତାରେ ଏହି ଉଦ୍ବୋଷିତ ସ୍ୱର ଅଧିକ ଶାଣିତ ଓ କଟାକ୍ଷ ଯୁକ୍ତ ।

ସର୍ବୋପରି ପ୍ରଗତିବାଦୀ ଓଡ଼ିଆ କବିତା ବହୁ ଆଳିକ ଓ ଜାତୀୟ, ଆନ୍ତର୍ଜାତୀୟ ସମସ୍ୟାରେ ଶବଳିତ । ଏକ ପକ୍ଷରେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ, ଗଡ଼ଜାତ ମିଶ୍ରଣ, ଭାଷାଭିତ୍ତିରେ ପ୍ରଦେଶ ଗଠନର ବିଫଳତା ସହି ଭାରତର ଔପନିବେଶିକ ଶୋଷଣରୁ ମୁକ୍ତି ପ୍ରୟାସ ସ୍ବାଧୀନତା ପ୍ରାପ୍ତିର ପ୍ରତିଛବି ଓ ପ୍ରତିକ୍ରିୟା ତଥା ଉର ସ୍ୱାଧୀନତା ଯୁଗର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ପ୍ରଗତିର ବିଡ଼ମ୍ବନା । ପୁନଶ୍ଚ ଶ୍ରେଣୀହୀନ, ଶୋଷଣମୁକ୍ତ, ସାମ୍ୟସମାଜ ଗଠନ ପାଇଁ କାର୍ଲମାର୍କସଙ୍କ ଚିନ୍ତାଦର୍ଶ ପ୍ରଗତିବାଦୀ କବିତାର ଏକ ମୁଖ୍ୟ ସ୍ୱର ରୂପେ ପ୍ରତିଭାତ ହୋଇଥିବାରୁ ଏହା ଥିଲା ମୁଖ୍ୟତଃ ଆହ୍ୱାନଧର୍ମୀ । ଏହାର ପ୍ରକାଶଭଙ୍ଗୀ ସହଜ, ସରଳ ଏବଂ ସାବଲୀଳ । ପ୍ରଗତିବାଦୀ କବିତାଗୁଡ଼ିକ ଉଦ୍ଦେଶ୍ୟଧର୍ମୀ ହୋଇଥିବାରୁ କାବ୍ୟ-କଳା ଦୃଷ୍ଟିରୁ କେତେକ ସ୍ଥଳରେ ହୁଏତ ଖର୍ବୀକୃତ ଓ ଅପରିପୁଷ୍ଟ । ମାତ୍ର ଗଣଜୀବନର ଦୁର୍ବାର ଶକ୍ତିକୁ ସଚେତନ କରିବାପାଇଁ ତହିଁରେ ବିପୁଳ କାବ୍ୟୋତ୍ସାହ ଅନାୟାସଲଭ୍ୟ ।

**ପ୍ରାନ୍ତଟୀକା**

[୧] ପଠାଣି ପଟ୍ଟନାୟକ : ସାହିତ୍ୟ ଓ ସମୀକ୍ଷା, ପୃ.୨୮

[୨] "ଏ ସୁବିଶାଳ ପୃଥିବୀ ସମସ୍ତଙ୍କ ପାଇଁ ବକ୍ଷ ପ୍ରସାରିତ କରି ଦେଉଅଛି ନିଜର ଅସୀମ ସଂପଦର ଦ୍ୱାର ସମସ୍ତଙ୍କ ପାଇଁ ମୁକ୍ତକରି ରଖିଅଛି । ଯେ ଯାହାର ଶକ୍ତି ଅନୁସାରେ ଉପାର୍ଜନ କର, ଭୋଗ କର, ବିଚରଣ କର, ଆନନ୍ଦିତ ହୁଅ ।"

[୩] "ଦୁଃଖୀ ପାଇଁ ଦିନେ କାହାରି ଜଗତେ
ନ କାନ୍ଦେ ଅନ୍ତର ତିଳେ
ଯାହାର ଯେତିକି ଧନମାନ ଶିରୀ
ପୂଜା ତାର ଏ ମହୀରେ ।"

[୪] ମହାନ୍ତି ନୃସିଂହ ଚରଣ: ମା'

[୫] ରାଉତରାୟ ସଚ୍ଚିଦାନନ୍ଦ: ବାର୍ତ୍ତା।

[୬] ରାଉତରାୟ ସଚ୍ଚିଦାନନ୍ଦ, 'ରକ୍ତବୀଜର ଅଭିଯାନ', ଅଭିଜ୍ଞାନ, ପୃ.୫୩୩

[୭] ରାଉତରାୟ ସଚ୍ଚିଦାନନ୍ଦ, ସର୍ବନାଶ ପଥେ